ପ୍ରଥମ ଓ ଦ୍ୱିତୀୟମାନର ଉପଯୋଗୀ

ନିମ୍ନ ପ୍ରାଥମିକ

# ପଦାର୍ଥ ପାଠ ।

( ଆଦର୍ଶ ପ୍ରଶ୍ନୋତ୍ତର )

---

ଶ୍ରୀଜଗନ୍ନାଥ [illegible]ଙ୍କ ଦ୍ୱାରା

ନୂତନ ସିଲାବସ ଅନୁସାରେ

ରଚିତ ଓ ପ୍ରକାଶିତ ।

[illegible] ସଂସ୍କରଣ ।



The Union Printing Works,
Printed by J. Pradhan,
CUTTACK,
1918.

ମୂଲ୍ୟ ଛଅ ପଇସା ମାତ୍ର ।

# ବିଜ୍ଞାପନ

| | | | |
|---|---|---|---|
| ଗ୍ରାମ୍ୟସମିତି | ଟ ୦ / | ଦାମ୍ପତ୍ୟ ଧର୍ମ | ଟ ୦/୨ |
| ଜ୍ଞାନଗଙ୍ଗା | ଟ ୦ / | କପାଚାଷ | ଟ ୦ <୨ |
| ମେହରୋଗଚିକିତ୍ସା | ଟ ୦ / | ସର୍ପବିଷଚିକିତ୍ସା | ଟ ୦ / |
| ମାଭପସ୍କର | ଟ ୦ / | କୁମାରୋତ୍ସବ | ଟ ୦ <୨ |
| ରାମସହସ୍ରନାମ | ଟ ୦ / | ସ୍ୱର୍ଗନରକବିଚାର | ଟ ୦ / |
| ରସାମୃତ | ଟ ୦ <୯ | ଲବଙ୍ଗୀଚାଷ | ଟ ୦ /୩ |
| ଷଷ୍ଠୀକଳା ପରିଣୟ | ଟ ୦ । | ସଂଯୁକ୍ତା | ଟ ୦ /୨ |
| ଶିଶୁଚିକିତ୍ସା | ଟ ୦ ✓ | ବୃଷ୍ଟିସଙ୍କେତ | ଟ ୦ <୯ |
| ଗୋଚିକିତ୍ସା | ଟ ୦ ୷ | ନବୀନସମ୍ରାଟ | ଟ ୦ ୷ |
| ଶ୍ଲୋକମୁକ୍ତାବଳୀ | ଟ ୦ / | ସମୁଦ୍ରଯାତ୍ରା ବିଚାର | ଟ ୦ / |
| ବିଚିତ୍ର ସନ୍ଦର୍ଭ | ଟ ୦ ✓ | ପ୍ରଭମନ୍ତ୍ର | ଟ ୦ / |
| ଜୀବନବନ୍ଧୁ | ଟ ୦ /୨ | ନାରିକେଳ ଚାଷ | ଟ ୦ <୨ |
| ଲିପିପ୍ରଣାଳୀ | ଟ ୦ <୯ | ସ୍ୱରମନ୍ଦର | ଟ ୦ <୯ |
| ଔଷଧ ବିଷଚିକିତ୍ସା | ଟ ୦ / | ଉଦ୍ବୋଧନୀ | ଟ ୦ ୨ |
| ଶିମିଳି ଆଳୁଚାଷ | ଟ ୦ <୫ | ବାଲ୍ୟବନ୍ଧୁ | ଟ ୦ / |
| ସଦାଚାର | ଟ ୦/୨ | ଇନ୍ଦ୍ରଜାଲକୌତୁକ | ଟ ୦ / |
| ପଟୋଳଚାଷ | ଟ ୦ /୩ | ଅଳ[illegible]ମାଳୁଚାଷ | ଟ ୦ / |
| ଚେରଚଣାଚାଷ | ଟ ୦ <୯ | ନା[illegible]ପତ୍ର, | ଟ ୦ / |
| ସଫଳ ଜୀବନ | ଟ ୦ <୨ | ପରମାୟୁ ପ୍ରବନ୍ଧ | ଟ ୦ / |
| ମଣିମଞ୍ଜୁଷା | ଟ ୦ <୬ | ପଦ୍ୟମାଳା ୧ମ | ଟ ୦ / |
| ସମସ୍କୃତସଦ୍‌ବ୍ୟବହାର | ଟ ୦ /୨ | ଗଦ୍ୟମାଳା ୨ୟ | ଟ ୦ / |
| ବାଳିକା ସଖା | ଟ ୦ ୯/ | [illegible]ଢରହାଙ୍କର | ଟ ୦ ✓ |

ଶ୍ରୀ ରାଧାକୃଷ୍ଣ ବସୁ ଏମ୍, ଏ,

ମାଣିକଘୋଷବଜାର, ପୋଃ [illegible] ଚାନ୍ଦନୀଚୌକ, କଟକ ।

ନିମ୍ନ ପ୍ରାଥମିକ

# ପଦାର୍ଥ ପାଠ ।

## ପ୍ରଥମମାନର ପାଠ୍ୟ ।

### ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ।

ଶିଶୁ ଶ୍ରେଣୀର ପଦାର୍ଥ ପାଠରେ ଯେଉଁ ଗଳ୍ପରେ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ବିଷୟ ବର୍ଣ୍ଣିତ ହୋଇଅଛି, ତାହାର ପୁନରାଲୋଚନା କରିବାକୁ ହେବ ।

### ଊଷା, ଦିବା, ରାତ୍ରି ଓ ସନ୍ଧ୍ୟା ।

ପ୍ରଶ୍ନ—ଊଷାକାଳ କାହାକୁ କହନ୍ତି ?

ଉତ୍ତର—ରାତ୍ରି ଶେଷରେ ଯେତେବେଳେ ପୂର୍ବଦିଗ ଅଳ୍ପ ଲାଲ ଦେଖାଯାଏ ସେହି ସମୟକୁ ଊଷାକାଳ କହନ୍ତି ।

ପ୍ର—ଦିନ କାହାକୁ କହନ୍ତି ?

ଉ—ସୂର୍ଯ୍ୟ ଉଦୟଠାରୁ ସୂର୍ଯ୍ୟ ଅସ୍ତ ହେବା ପର୍ଯ୍ୟନ୍ତ ଆଲୋକମୟ ସମୟକୁ ଦିନ କହନ୍ତି

ପ୍ର—ରାତ୍ରି କାହାକୁ କହନ୍ତି

ଉ—ସୂର୍ଯ୍ୟ ଅସ୍ତ ହେଲାଠାରୁ ପୁଣି ସୂର୍ଯ୍ୟ ଉଦୟ ପର୍ଯ୍ୟନ୍ତ ଅନ୍ଧକାରମୟ ସମୟକୁ ରାତ୍ରି କହନ୍ତି ।

ପ୍ର—ତୁମ୍ଭେ ରାତ୍ରିରେ ଆକାଶକୁ ଦେଖିଅଛ ?

ଉ—ହଁ ଦେଖିଅଛୁଁ ।

ପ୍ର—ରାତ୍ରରେ ଆକାଶରେ ଯେଉଁ ଅସଂଖ୍ୟ ଅଲୋକିତ ସାନ ସାନ ପଦାର୍ଥ ଦେଖ, ସେ ଗୁଡ଼ିକ କଣ ?

ଉ—ସେ ଗୁଡ଼ିକ ତାରା ।

ପ୍ର—କୌଣସି କୌଣସି ଦିନ ରାତ୍ରରେ ଗୋଟିଏ ବଡ଼ ଅଲୁଅ ଗୋଲ ଦେଖାଯାଏ, ସେହି ଅଲୁଅ ଗୋଲାର ନାମ କଣ ?

ଉ—ରାତ୍ରରେ ଅକାଶରେ ଯେଉଁ ବଡ଼ ଅଲୁଅ ଗୋଲ ଦେଖାଯାଏ ତାହାକୁ ଜହ୍ନ କହନ୍ତି ।

ପ୍ର—ସବୁ ଦିନ ରାତ୍ରରେ ଜହ୍ନ ପଡ଼େ କି ?

ଉ—ନା, କୌଣସି କୌଣସି ଦିନ ରାତ୍ରରେ ଆଦୌ ଜହ୍ନ ପଡ଼େ ନାହିଁ ।

ପ୍ର—ଦିନରେ ତାରା ବା ଜହ୍ନ ଦେଖାଯାଏ ନାହିଁ କାହିଁକି ?

ଉ—ଦିନରେ ସୂର୍ଯ୍ୟଙ୍କ ଅଲୁଅ ହେଉଥିବାରୁ ତାରା ବା ଜହ୍ନ ଦେଖା ଯାଆନ୍ତି ନାହିଁ ।

ପ୍ର—କେଉଁ ସମୟରେ ଛାୟା ବଡ଼ ହୁଏ ?

ଉ—ସକାଳ ଓ ସନ୍ଧ୍ୟା ସମୟରେ ସୂର୍ଯ୍ୟ ନିମ୍ନରେ ଥିବାରୁ ଛାୟା ବଡ଼ ହୁଏ ।

ପ୍ର—କେଉଁ ସମୟରେ ଛାୟା ସାନ ହୁଏ ?

ଉ—ଦ୍ୱିପହର ବେଳେ ସୂର୍ଯ୍ୟ ଉଚ୍ଚ ସ୍ଥାନରେ ଥିବାରୁ ଛାୟା ସାନ ହୁଏ ।

ପ୍ର—ସବୁ ଋତୁର ଦ୍ୱିପ୍ରହର ବେଳେ ସମାନ ଛାୟା ହୁଏ କି ?

ଉ—ନା, ଗ୍ରୀଷ୍ମ ଋତୁର ଦୁଇପହର ବେଳେ ସୂର୍ଯ୍ୟ ଠିକ ମୁଣ୍ଡ ଉପରକୁ ଉଠିବାରୁ ସାନ ଛାଇ ହୁଏ । ମାତ୍ର ଶୀତ ଋତୁର ଦୁଇପହର ବେଳେ ସୂର୍ଯ୍ୟ ଟିକିଏ ଢଳେ ରହୁବାରୁ ଛାଇ ଟିକିଏ ବଡ଼ ହୁଏ ।

ପ୍ର—ବର୍ଷ ମଧ୍ୟରେ କେଉଁଦିନ ଦୁଇପହର ବେଳେ ସ୍ତମ୍ଭଠାରୁ ସାନ ଛାଇ ଏବଂ କେଉଁ ଦିନ ଦୁଇପହର ବେଳେ ସ୍ତମ୍ଭଠାରୁ ବଡ ଛାଇ ହୁଏ ।

ଉ—ବର୍ଷ ମଧ୍ୟରେ ଡିସେମ୍ବର ମାସ ତା ୨୨ ଦିନ ଦୁଇପହର ବେଳେ ଅନ୍ୟାନ୍ୟ ଦିନର ଦୁଇପହର ବେଳର ଛାଇ ଅପେକ୍ଷା ବଡ ଛାଇ ଏବଂ ଜୁନମାସ ତା ୨୧ ଦିନ ଦୁଇପହର ବେଳେ ଅନ୍ୟାନ୍ୟ ଦିନର ଦୁଇପହର ବେଳର ଛାଇ ଅପେକ୍ଷା ସାନ ଛାଇ ହୁଏ ।

---

### ଋତୁ ଭେଦରେ ଦିବାରାତ୍ରିର ପରିମାଣଭେଦ ।

ପ୍ର—କେଉଁ ଋତୁରେ ଦିନ ବଡ଼ ହୁଏ ?

ଉ—ଗ୍ରୀଷ୍ମ ଋତୁରେ ଦିନ ବଡ ହୁଏ ।

ପ୍ର—ଗ୍ରୀଷ୍ମ ଋତୁରେ କାହିଁକି ଦିନ ବଡ ହୁଏ ?

ଉ—ଗ୍ରୀଷ୍ମ ଋତୁରେ ସୂର୍ଯ୍ୟ ଅଧିକ ସମୟ ଆକାଶରେ ରହିବାରୁ ଦିନ ବଡ଼ ହୁଏ ଏବଂ ରାତ୍ର ସାନ ହୁଏ ।

ପ୍ର—ଶୀତ ଋତୁରେ କାହିଁକି ଦିନ ସାନ ହୁଏ ?

ଉ—ଶୀତ ଋତୁରେ ସୂର୍ଯ୍ୟ ଅଳ୍ପ ସମୟ ଆକାଶରେ ରହିବାରୁ ଦିନ ସାନ ହୁଏ ଏବଂ ରାତ୍ର ବଡ ହୁଏ ।

ପ୍ର—କେଉଁ ସମୟରେ ଦିନ ରାତ୍ର ସମାନ ହୁଏ ?

ଉ—ମାର୍ଚ୍ଚ ଓ ସେପ୍ଟେମ୍ବର ମାସରେ ଦିନ ରାତ୍ର ପ୍ରାୟ ସମାନ ହୁଏ ।

---

### ଉଦ୍ଭିଦ ଜୀବନ ।

ପ୍ର—ଉଦ୍ଭିଦ କାହାକୁ କହନ୍ତି ?

ଉ—ବୃକ୍ଷ, ଲତା, ତୃଣ ପ୍ରଭୃତିକୁ ଉଦ୍ଭିଦ କହନ୍ତି ।

ପ୍ର—ଉଦ୍ଭିଦମାନଙ୍କ ପ୍ରାଣ ଅଛି କି ନାହିଁ ?

ପ୍ର—ରାତିରେ ଆକାଶରେ ଯେଉଁ ଅସଂଖ୍ୟ ଆଲୋକିତ ସାନ ସାନ ପଦାର୍ଥ ଦେଖ, ସେ ଗୁଡ଼ିକ କଣ ?

ଉ—ସେ ଗୁଡ଼ିକ ତାରା ।

ପ୍ର—କୌଣସି କୌଣସି ଦିନ ରାତିରେ ଗୋଟିଏ ବଡ଼ ଆଲୁଅ ଗୋଲା ଦେଖାଯାଏ, ସେହି ଆଲୁଅ ଗୋଲାର ନାମ କଣ ?

ଉ—ରାତିରେ ଆକାଶରେ ଯେଉଁ ବଡ଼ ଆଲୁଅ ଗୋଲା ଦେଖାଯାଏ ତାହାକୁ ଜହ୍ନ କହନ୍ତି ।

ପ୍ର—ସବୁ ଦିନ ରାତିରେ ଜହ୍ନ ପଡ଼େ କି ?

ଉ—ନା, କୌଣସି କୌଣସି ଦିନ ରାତିରେ ଆଦୌ ଜହ୍ନ ପଡ଼େ ନାହିଁ ।

ପ୍ର—ଦିନରେ ତାରା ବା ଜହ୍ନ ଦେଖାଯାଏ ନାହିଁ କାହିଁକି ?

ଉ—ଦିନରେ ସୂର୍ଯ୍ୟଙ୍କ ଆଲୁଅ ହେତୁରୁ ତାରା ବା ଜହ୍ନ ଦେଖାଯାଆନ୍ତି ନାହିଁ ।

ପ୍ର—କେଉଁ ସମୟରେ ଛାୟା ବଡ଼ ହୁଏ ?

ଉ—ସକାଳ ଓ ସନ୍ଧ୍ୟା ସମୟରେ ସୂର୍ଯ୍ୟ ନିମ୍ନରେ ଥିବାରୁ ଛାୟା ବଡ଼ ହୁଏ ।

ପ୍ର—କେଉଁ ସମୟରେ ଛାୟା ସାନ ହୁଏ ?

ଉ—ଦ୍ୱିପହର ବେଳେ ସୂର୍ଯ୍ୟ ଉଚ୍ଚ ସ୍ଥାନରେ ଥିବାରୁ ଛାୟା ସାନ ହୁଏ ।

ପ୍ର—ସବୁ ଋତୁର ଦ୍ୱିପ୍ରହର ବେଳେ ସମାନ ଛାୟା ହୁଏ କି ?

ଉ—ନା, ଗ୍ରୀଷ୍ମ ଋତୁର ଦୁଇପହର ବେଳେ ସୂର୍ଯ୍ୟ ଠିକ ମୁଣ୍ଡ ଉପରକୁ ଉଠିବାରୁ ସାନ ଛାଇ ହୁଏ । ମାତ୍ର ଶୀତ ଋତୁର ଦୁଇପହର ବେଳେ ସୂର୍ଯ୍ୟ ଟିକିଏ ଢଳି ରହିବାରୁ ଛାଇ ଟିକିଏ ବଡ଼ ହୁଏ ।

ପ୍ର—ବର୍ଷ ମଧ୍ୟରେ କେଉଁଦିନ ଦୁଇପହର ବେଳେ ସ୍ତମ୍ଭଟାରୁ ସାନ ଛାଇ ଏବଂ କେଉଁ ଦିନ ଦୁଇପହର ବେଳେ ସ୍ତମ୍ଭଟାରୁ ବଡ଼ ଛାଇ ହୁଏ ।

ଉ—ବର୍ଷ ମଧ୍ୟରେ ଡିସେମ୍ବର ମାସ ତା ୨୨ ରଖ ଦୁଇପହର ବେଳେ ଅନ୍ୟାନ୍ୟ ଦିନର ଦୁଇପହର ବେଳର ଛାଇ ଅପେକ୍ଷା ବଡ଼ ଛାଇ ଏବଂ ଜୁନମାସ ତା ୨୧ ରଖ ଦିନ ଦୁଇପହର ବେଳେ ଅନ୍ୟାନ୍ୟ ଦିନର ଦୁଇପହର ବେଳର ଛାଇ ଅପେକ୍ଷା ସାନ ଛାଇ ହୁଏ ।

---

## ଋତୁ ଭେଦରେ ଦିବାରାତ୍ରିର ପରିମାଣଭେଦ ।

ପ୍ର—କେଉଁ ଋତୁରେ ଦିନ ବଡ଼ ହୁଏ ?

ଉ—ଗ୍ରୀଷ୍ମ ଋତୁରେ ଦିନ ବଡ଼ ହୁଏ ।

ପ୍ର—ଗ୍ରୀଷ୍ମ ଋତୁରେ କାହିଁକି ଦିନ ବଡ଼ ହୁଏ ?

ଉ—ଗ୍ରୀଷ୍ମ ଋତୁରେ ସୂର୍ଯ୍ୟ ଅଧିକ ସମୟ ଆକାଶରେ ରହୁଥିବାରୁ ଦିନ ବଡ଼ ହୁଏ ଏବଂ ରାତ୍ରି ସାନ ହୁଏ ।

ପ୍ର—ଶୀତ ଋତୁରେ କାହିଁକି ଦିନ ସାନ ହୁଏ ?

ଉ—ଶୀତ ଋତୁରେ ସୂର୍ଯ୍ୟ ଅଳ୍ପ ସମୟ ଆକାଶରେ ରହୁଥିବାରୁ ଦିନ ସାନ ହୁଏ ଏବଂ ରାତ୍ରି ବଡ଼ ହୁଏ ।

ପ୍ର—କେଉଁ ସମୟରେ ଦିନ ରାତ୍ରି ସମାନ ହୁଏ ?

ଉ—ମାର୍ଚ୍ଚ ଓ ସେପ୍ଟେମ୍ବର ମାସରେ ଦିନ ରାତ୍ରି ପ୍ରାୟ ସମାନ ହୁଏ ।

---

## ଉଦ୍ଭିଦ ଜୀବନ ।

ପ୍ର—ଉଦ୍ଭିଦ କାହାକୁ କହନ୍ତି ?

ଉ—ବୃକ୍ଷ, ଲତା, ତୃଣ ପ୍ରଭୃତିକୁ ଉଦ୍ଭିଦ କହନ୍ତି ।

ପ୍ର—ଉଦ୍ଭିଦମାନଙ୍କ ପ୍ରାଣ ଅଛି କି ନାହିଁ ?

ଉ—ଉଦ୍ଭିଦମାନଙ୍କର ପ୍ରାଣ ଅଛି ।

ପ୍ର—ଉଦ୍ଭିଦମାନେ କଣ ଖାଇ ବଞ୍ଚନ୍ତି ?

ଉ—ଉଦ୍ଭିଦମାନେ ମାଟିରୁ ରସ ଟାଣି ନେଇ ବଞ୍ଚନ୍ତି ।

ପ୍ର—ଉଦ୍ଭିଦମାନେ ମାଟିରୁ ରସ ଟାଣି ନେଇ ବଞ୍ଚିବା କଥା ବୁଝାଇ ଦିଅ ?

ଉ—ଦୁଇଗୋଟି ଗଛ ଉପାଡ଼ି ଆଣି ଗୋଟିକୁ ପାଣିରେ, ଅନ୍ୟଟିକୁ ଶୁଖିଲାରେ ରଖିଦେଲେ ଦେଖାଯିବ ଶୁଖିଲାରେ ଥିବା ଗଛଟି ଖାଇବାକୁ ନ ପାଇ ଶୀଘ୍ର ମରିଗଲା ଏବଂ ପାଣିରେ ଥିବା ଗଛଟି ପାଣିରୁ ରସ ଟାଣି କରି ଅଧିକ ସମୟ ବଞ୍ଚି ରହିଲା ।

ପ୍ର—ଉଦ୍ଭିଦମାନେ କାହିଁରୁ ଜନ୍ମନ୍ତି ।

ଉ—ଉଦ୍ଭିଦମାନେ ବୀଜରୁ ଜନ୍ମନ୍ତି ?

ପ୍ର—କେତେଗୁଡ଼ିଏ ଉଦ୍ଭିଦ ବୀଜର ନାମ କହ ?

ଉ—ଧାନ, ଗହମ, ସୋରିଷ, ଆମ୍ବଟାକୁଆ, ପଣସମଞ୍ଜି ଇତ୍ୟାଦି ।

ପ୍ର—ବୀଜମାନଙ୍କ ମଧ୍ୟରୁ କେଉଁମାନଙ୍କୁ ଶସ୍ୟ କହନ୍ତି ?

ଉ—ଧାନ, ଗହମ, ଯବ, ମୁଗ, ବିରି ପ୍ରଭୃତିଙ୍କୁ ଶସ୍ୟ କହନ୍ତି ।

ପ୍ର—କେଉଁମାନେ ତୈଳବୀଜ ?

ଉ—ସୋରିଷ, ରାଶି, ଜଡ଼ା, ପୋଲଙ୍ଗ ପ୍ରଭୃତିକୁ ତୈଳବୀଜ କହନ୍ତି ।

ପ୍ର—ସୋରିଷ, ରାଶି, ଜଡ଼ା, ପୋଲଙ୍ଗ ପ୍ରଭୃତିକୁ କାହିଁକି ତୈଳବୀଜ କହନ୍ତି ?

ଉ—ସୋରିଷ, ରାଶି, ଜଡ଼ା, ପୋଲଙ୍ଗ ପ୍ରଭୃତିରୁ ତୈଳ ବାହାରେ ବୋଲି ସେମାନଙ୍କୁ ତୈଳବୀଜ କହନ୍ତି ।

ପ୍ର—ବୀଜଗୁଡ଼ିକୁ ଗଛର ଡିମ୍ବ ବୋଲି କୁହାଯିବାର କାରଣ କଣ ?

ଉ—ଡିମ୍ବରୁ ଯେପରି ପ୍ରାଣ ଛୁଆ ବାହାର ହୁଏ ବୀଜରୁ ସେହିପରି ପ୍ରାଣ ଗଛ ଜନ୍ମେ ବୋଲି ବୀଜକୁ ଗଛର ଡିମ୍ବ କହନ୍ତି ।

# ପଦାର୍ଥ ପାଠ ।

ପ୍ର—ଉସୁନା ଧାନରୁ ଗଜା ହୁଏ ନାହିଁ କାହିଁକି ?

ଉ—ସବୁ ବୀଜର ଜୀବ ଅଛି, ଧାନକୁ ସିଝାଇ ଦେଲେ ସେ ମରିଯାଏ ଏଣୁ ଆଉ ଗଜା ହୁଏ ନାହିଁ ।

ପ୍ର—କଣ କଣ ପାଇଲେ ମଞ୍ଜିରୁ ଗଜା ହୁଏ ?

ଉ—ଉପଯୁକ୍ତ ପରିମାଣରେ ଜଳ, ବାୟୁ, ଓ ଉତ୍ତାପ ପାଇଲେ ମଞ୍ଜିର ଉପର ଆବରଣ ଫଟାଇ ଗଜା ବାହାର ହୁଏ ।

ପ୍ର—ବୀଜରୁ କପରି ଗଛ ବାହାର ହୁଏ ?

ଉ—ସରାଟରେ ଓଦା କରଡଗୁଣ୍ଡ ରଖି ବନ୍ତୁଲବୀଜ ପୋତିଦେଇ ପ୍ରୟୋଜନ ଅନୁସାରେ ଅଳ୍ପ ଅଳ୍ପ ଜଳ ଦେଲେ ଦୁଇ ତିନିଦିନ ପରେ ଦେଖିବା ବୀଜଟି ଫାଟିଯାଇ ତହିଁରୁ ଗୋଟିଏ ମୁନିଆ ଧଳା ପଦାର୍ଥ ତଳଆଡ଼କୁ ଯାଇଅଛି । ଏହା ତାହାର ଚେର ଏବଂ ଉପରକୁ ଯେଉଁ ଅଂଶ ବାହାରି ଥିବ ତାହାର ନାମ ଗଜା ବା ଗଛ ।

ପ୍ର—ବୀଜଟି ଉପାଡ଼ି ଗଜାଟି ମାଟି ଭିତରକୁ ଏବଂ ଚେରଟି ମାଟି ଉପରକୁ ରଖି ବୀଜଟି ପୋତି ଦେଲେ କି ପରିବର୍ତ୍ତନ ଘଟିବ ?

ଉ—ଗଜା ବୀଜଟିକୁ ଓଲଟାଇ ପୋତି ଦେଲେ ଚେର ବଙ୍କା ହୋଇ ମାଟିଭିତରକୁ ପଶିବ ଏବଂ ଗଜାଟି ବଙ୍କା ହୋଇ ଉପରକୁ ବାହାରି ଆସିବ ।

ପ୍ର—ବୀଜପତ୍ର କାହାକୁ କହନ୍ତି ?

ଉ—ମଞ୍ଜିଭିତରେ ଯେଉଁ ଦୁଇଫାଳ ଶସ୍ୟ ଥାଏ ତାହାକୁ ବୀଜପତ୍ର କହନ୍ତି ।

ପ୍ର—ବୀଜପତ୍ର ଦ୍ୱାରା ଗଛର କି ଉପକାର ହୁଏ ?

ଉ—ସାନ ଗଛ ମାଟିରୁ ରସ ଟାଣି ପାରେ ନାହିଁ । ମାତ୍ର ଏହି ବୀଜପତ୍ରରୁ ଖାଦ୍ୟ ଗ୍ରହଣ କରି ବଢ଼େ ।

ପ୍ର—ବୀଜପତ୍ର ମାଟିଭିତରେ ରହେ କି ମାଟି ଉପରକୁ ବାହାରି ଥାଏ ?

ଉ—କୌଣସି କୌଣସି ପ୍ରକାର ଗଛର ବୀଜପତ୍ର ମାଟି ଭିତରେ ରହେ ଏବଂ କୌଣସି କୌଣସି ପ୍ରକାର ଗଛର ବୀଜପତ୍ର ମାଟି ଉପରକୁ ବାହାରି ଆସେ ।

ପ୍ର—କେଉଁ କେଉଁ ଗଛର ବୀଜପତ୍ର ମାଟି ଉପରକୁ ବାହାରେ ?

ଉ—ମୁଗ, କଖାରୁ, ତେନ୍ତୁଳି, ଶିମ ପ୍ରଭୃତିର ବୀଜପତ୍ର ମାଟି ଉପରକୁ ବାହାରେ ।

ପ୍ର—କେଉଁମାନଙ୍କର ବୀଜପତ୍ର ମାଟିଭିତରେ ରହେ ?

ଉ—ବୁଟ, ଆମ୍ବ, ପଣସ ପ୍ରଭୃତିର ବୀଜପତ୍ର ମାଟିଭିତରେ ରହେ

ପ୍ର—ସମସ୍ତ ପ୍ରକାର ଉଦ୍ଭିଦର ବୀଜପତ୍ର ଦୁଇଗୋଟି କି ନା ?

ଉ—ଅଧିକାଂଶ ଉଦ୍ଭିଦର ଦୁଇଗୋଟି ବୀଜପତ୍ର, କିନ୍ତୁ କୌଣସି କୌଣସି ଉଦ୍ଭିଦର ଗୋଟିଏ ମାତ୍ର ବୀଜପତ୍ର ଅଛି ।

ପ୍ର—କେଉଁ କେଉଁ ଉଦ୍ଭିଦର ଦୁଇଗୋଟି ବୀଜପତ୍ର ହୁଏ ?

ଉ—ତେନ୍ତୁଳି, ଆମ୍ବ, ପଣସ, ମୁଗ, ବର, ହରଡ଼, ଶିମ ପ୍ରଭୃତି ବୃକ୍ଷର ଦୁଇଗୋଟି ବୀଜପତ୍ର ହୁଏ ।

ପ୍ର—କେଉଁ କେଉଁ ଉଦ୍ଭିଦର ଗୋଟିଏ ବୀଜପତ୍ର ହୁଏ ?

ଉ—ଧାନ, ଗହମ, ନଡ଼ିଆ, ତାଳ, ଖଜୁରୀ ପ୍ରଭୃତି ବୃକ୍ଷର ଗୋଟିଏ ବୀଜପତ୍ର ହୁଏ ।

ପ୍ର—କେଉଁ କେଉଁ ବୃକ୍ଷର ବୀଜପତ୍ର ପତଳା ?

ଉ—କଖାରୁ, କାକୁଡ଼ି, ଗବ ପ୍ରଭୃତି, ବୃକ୍ଷର ବୀଜପତ୍ର ପତଳା ଅଟେ ।

ପ୍ର—ଉଦ୍ଭିଦର ଯେଉଁ ଅଂଶ ମାଟିଭିତରକୁ ଯାଇଥାଏ ତାହାର ନାମ କଣ ?

ଉ—ଉଦ୍ଭିଦର ଯେଉଁ ଅଂଶ ମାଟି ଭିତରକୁ ଯାଇଥାଏ ତାହାର ନାମ ଚେର ।

ପ୍ର—ଉଦ୍ଭିଦମାନଙ୍କର ଗୋଟିଏ ଚେର ଥାଏ କି ବେଶିଚେର ଥାଏ ?

ଉ—କେତେକ ଉଦ୍ଭିଦର ଗୋଟିଏ ପ୍ରଧାନ ଚେର ଓ ଅନେକ-ଗୁଡ଼ିଏ ଶାଖା ପ୍ରଶାଖା ଚେର ଥାଏ । ମାତ୍ର ଅପର କେତେକ ଉଦ୍ଭିଦର ପ୍ରଧାନ ଚେର ନ ଥାଇ କେବଳ ଅସଂଖ୍ୟ ସରୁ ସରୁ ଚେର ଥାଏ ।

ପ୍ର—କେଉଁ କେଉଁ ଉଦ୍ଭିଦର ପ୍ରଧାନ ବା ନାୟିକା ଚେର ଥାଏ ?

ଉ—ତେନ୍ତୁଳି, ଆମ୍ବ, ପଣସ, ମୁଗ, ବର ପ୍ରଭୃତି ଯେଉଁ ବୃକ୍ଷମାନଙ୍କର ଦୁଇଗୋଟି ଦାଳପତ୍ର ହୁଏ ସେହିମାନଙ୍କର ନାୟିକା ଚେର ହୁଏ ।

ପ୍ର—କେଉଁ କେଉଁ ଉଦ୍ଭିଦର ନାୟିକା ଚେର ନ ଥାଏ ?

ଉ—ଧାନ, ଗହମ, ନଡ଼ିଆ, ତାଳ, ଖଜୁରୀ, ପ୍ରଭୃତି ଯେଉଁ ସବୁ ଉଦ୍ଭିଦର ଗୋଟିଏ ମାତ୍ର ଦାଳପତ୍ର ହୁଏ ସେହି ବୃକ୍ଷମାନଙ୍କର ନାୟିକାଚେର ନ ଥାଏ ।

ପ୍ର—ଉଦ୍ଭିଦର ଯେଉଁ ଯେଉଁ ଅଂଶ ମାଟି ଉପରକୁ ଥାଏ ସେମାନଙ୍କର ନାମ କହ ।

ଉ—କାଣ୍ଡ, ଶାଖା, ପତ୍ର, ଫୁଲ, ଓ ଫଳ ।

ପ୍ର—ସମସ୍ତ ପ୍ରକାର ଗଛ ମଞ୍ଜିରୁ ଜନ୍ମନ୍ତି କି ନା ?

ଉ—ସମସ୍ତ ପ୍ରକାର ଗଛ ମଞ୍ଜିରୁ ଜନ୍ମନ୍ତି ନାହିଁ । କୌଣସି କୌଣସି ଗଛର ଡାଳ, କୌଣସି କୌଣସି ଗଛର ମୂଳରେ ଥିବା ପୁଅ, କୌଣସି କୌଣସି ଗଛର ପତ୍ର ଲଗାଇଲେ ଗଛ ହୁଏ । ମାତ୍ର ଅଧିକାଂଶ ଗଛ ମଞ୍ଜିରୁ ଜନ୍ମନ୍ତି ।

ପ୍ର—କେଉଁ କେଉଁ ଗଛର ଡାଳ ଲଗାଯାଏ ?

ଉ—ମଲ୍ଲି, ଗୋଲାପ, କ୍ରୋଟନ ପ୍ରଭୃତିର ଡାଳ ଲଗାଯାଏ ।

ପ୍ର—କେଉଁ କେଉଁ ଗଛର ପୁଅ ଲଗାଯାଏ ?

ଉ—କଦଳୀ, ସାରୁ, ଗଦ ପ୍ରଭୃତିର ପୁଅ ଲଗାଯାଏ ।

ପ୍ର—କେଉଁ ଗଛ ପତ୍ରରୁ ଜାତ ହୁଏ ?

ଉ—ହେମକେଦାର ଗଛର ପୋଖତ ପତ୍ରକୁ ମାଟିରେ ପକାଇ ରଖିଲେ କିଛିଦିନ ପରେ-ତହିଁରୁ କେତେ ଗୁଡ଼ାଏ ଗଛ ଜାତ ହୁଅନ୍ତି ।

---

## ଉଦ୍ଭିଦ ଭୋଜୀ ଓ ମାଂସାଶୀ ପ୍ରାଣୀ ।

ପ୍ର—କେତେ ଗୁଡ଼ାଏ ପ୍ରାଣୀର ନାମ କହ ।

ଉ—ମନୁଷ୍ୟ, ହାତୀ, ଘୋଡ଼ା, ମେଣ୍ଢା, ଛେଳି, କୁକୁର, ଶଗାଳ, ବାଘ, ସିଂହ, ମାଛ, କୁମ୍ଭୀର, କାଉ, ଘରଚଟିଆ, ବଣି, ସାପ, ବେଙ୍ଗ, ଜିଆ, ଉଇ, ପିମ୍ପୁଡ଼ି ପ୍ରଭୃତି ।

ପ୍ର—ପ୍ରାଣୀମାନେ କଣ ଖାଇ ବଞ୍ଚନ୍ତି ?

ଉ—କୌଣସି କୌଣସି ପ୍ରାଣୀ ଗଛ ପତ୍ର ଫଳ ମୂଳ ପ୍ରଭୃତି ଉଦ୍ଭିଦ ଖାଇ ବଞ୍ଚନ୍ତି । ଆଉ କେତେକ ପ୍ରାଣୀ ଅନ୍ୟ ପ୍ରାଣୀର ମାଂସ ଖାଇ ପ୍ରାଣ ଧାରଣ କରନ୍ତି ।

ପ୍ର—ଯେଉଁ ପ୍ରାଣୀମାନେ ଉଦ୍ଭିଦ ଖାଇ ପ୍ରାଣ ଧାରଣ କରନ୍ତି ସେମାନଙ୍କୁ କି ପ୍ରାଣୀ କହନ୍ତି ?

ଉ—ଯେଉଁ ପ୍ରାଣୀମାନେ ଉଦ୍ଭିଦ ଖାଇ ପ୍ରାଣ ଧାରଣ କରନ୍ତି ସେମାନଙ୍କୁ ଉଦ୍ଭିଦଭୋଜୀ ପ୍ରାଣୀ କହନ୍ତି ।

ପ୍ର—ଯେଉଁ ପ୍ରାଣୀମାନେ ଅନ୍ୟପ୍ରାଣୀର ମାଂସ ଖାଇ ପ୍ରାଣ ଧାରଣ କରନ୍ତି ସେମାନଙ୍କୁ କି ପ୍ରାଣୀ କହନ୍ତି ?

ଉ—ଯେଉଁ ପ୍ରାଣୀମାନେ ଅନ୍ୟ ପ୍ରାଣୀର ମାଂସ ଖାଇ ପ୍ରାଣ ଧାରଣ କରନ୍ତି ସେମାନଙ୍କୁ ମାଂସାଶୀ ପ୍ରାଣୀ କହନ୍ତି ।

ପ୍ର—କେତେଗୁଡ଼ାଏ ଉଦ୍ଭିଦଭୋଜୀ ପ୍ରାଣୀର ନାମ କହ ?

ଉ—ହାତୀ, ଘୋଡ଼ା, ଗୋରୁ, ମହିଷ ପ୍ରଭୃତି ।

ପ୍ର—କେତେଗୁଡ଼ାଏ ମାଂସାଶୀ ପ୍ରାଣୀର ନାମ କହ ?

ଉ—ବାଘ, ସିଂହ, ବିରାଡ଼ି, କୁକୁର ପ୍ରଭୃତି ।

ପ୍ର—ଉଦ୍ଭିଦଭୋଜୀ ପ୍ରାଣୀ ଓ ମାଂସାଶୀ ପ୍ରାଣୀ ମଧ୍ୟରେ ପ୍ରଭେଦ କଣ ?

ଉ—ଉଦ୍ଭିଦଭୋଜୀ ପ୍ରାଣୀମାନଙ୍କର ନଖ ଓ ଦାନ୍ତ ଅପେକ୍ଷା ମାଂସାଶୀ ପ୍ରାଣୀମାନଙ୍କର ନଖ ଓ ଦାନ୍ତ ତୀକ୍ଷ୍ଣ ଅଟେ । ଅନ୍ୟ ମାଂସାଶୀ ପ୍ରାଣୀମାନଙ୍କର ଶରୀର ଉଦ୍ଭିଦଭୋଜୀ ପ୍ରାଣୀମାନଙ୍କର ଶରୀର ଅପେକ୍ଷା କ୍ଷୀଣ ଓ ଶୀଘ୍ର ଗମନଶୀଳ ଅଟେ ।

---

## ଦ୍ୱିତୀୟମାନର ପାଠ୍ୟ ।

## ଆମ୍ବ ବିଷୟରେ ଶିକ୍ଷା ।

ଉପକରଣ—ଦୁଇ ତିନୋଟି କଞ୍ଚା ଆମ୍ବ ଏବଂ କେତେକ ଖଣ୍ଡ ପାଚିଲା ଆମ୍ବ ।

ପ୍ର—(ଗୋଟିଏ ଆମ୍ବ ଦେଖାଇ) ଏହା କଣ ?

ଉ—ଏହା ଆମ୍ବ ।

ପ୍ର—ଆମ୍ଭେମାନେ ଏହାକୁ କଣ କରୁଁ ?

ଉ—ଆମ୍ଭେମାନେ ଏହାକୁ ଖାଉଁ ।

ପ୍ର—ଆମ୍ଭେମାନେ ଏହାକୁ କିପରି ଖାଉଁ ?

ଉ—ଚଟଣି କରି ଖାଉଁ, ରାନ୍ଧି ଖାଉଁ, ଏହାକୁ କାଟି ଖରାରେ ଶୁଖାଇ ଅମ୍ବୁଲ ବା ଆମ୍ବଚୂର କରି ଖାଉଁ । ଆଉ ମଧ୍ୟ ପାଚିଲେ ଏହାର ରସ ଖାଉଁ ।

ପ୍ର—(ଖଣ୍ଡିଏ ପାଚିଲା ଆମ୍ବ ଦେଖାଇ) ଏହାର ମଧ୍ୟରେ ଏହି ଯେଉଁ ଧଳା ପଦାର୍ଥଟି ଦିଶୁଅଛି ତାହାର ନାମ କଣ ?

ଉ—ଆମ୍ବ ମଧ୍ୟରେ ଯେଉଁ ଧଳା ପଦାର୍ଥଟି ଦିଶୁଅଛି ତାହାର ନାମ କୋଇଲି ।

ପ୍ର—କୋଇଲିର ଚତୁଃପାଖରେ ଏହି ଯେଉଁ ଶକ୍ତ ଅଂଶ ଦିଶୁଅଛି ତାହାର ନାମ କଣ ?

ଉ—କୋଇଲି ଗୁହିଯାଣରେ ଯେଉଁ ଶକ୍ତ ଅଂଶ ଦିଶୁଅଛି ତାହାର ନାମ ଟାକୁଆ ।

ପ୍ର—ଏହି ଶାଗୁଆ ଅଂଶଟିର ନାମ କଣ ?

ଉ—ଏହା ଆମ୍ବର ଚୋପା ।

ପ୍ର—ଆମ୍ବ ପାଚିଲେ ଏହାର କେଉଁ ଅଂଶ ରସ ହୁଏ ।

ଉ—ଆମ୍ବ ପାଚିଲେ ଏହି ନରମ ଧଳା ଅଂଶ ତରଳ ହୋଇ ରସ ହୁଏ ।

ପ୍ର—ଆମ୍ବର ଭିନ୍ନ ଭିନ୍ନ ଅଂଶର ନାମ କହ ?

ଉ—ଚୋପା, ରସ, ଟାକୁଆ, କୋଇଲି ।

ପ୍ର—ଯେଉଁ ମଞ୍ଜିରୁ ଆମ୍ବ ଗଛ ହୁଏ ତାହାର ନାମ କଣ ?

ଉ—ଆମ୍ବର ମଞ୍ଜିକୁ ଟାକୁଆ କହନ୍ତି ।

ପ୍ର—ଆମ୍ବର ବୀଜପତ୍ର ଅଛି କି ନାହିଁ ?

ଉ—ଟାକୁଆ ମଧ୍ୟରେ ଯେଉଁ ଦୁଇଫାଳ କୋଇଲି ଅଛି ତାହା ଆମ୍ବ-ଗଛର ବୀଜପତ୍ର ।

ପ୍ର—ଆମ୍ବ ବିଷୟରେ ଯାହା ଜାଣ ସଂକ୍ଷେପରେ ଲେଖ ବା କହ ?

ଉ—(ଆମ୍ବ ବିଷୟରେ ରଚନା)—

ମାଘ ଫଗୁଣ ମାସରେ ଆମ୍ବ ବଉଳ ହୁଏ । କଷି ଆମ୍ବକୁ ଆମ୍ଭେମାନେ ଚଟଣି କରି ଖାଉଁ । ଟିକିଏ ବଡ଼ ହେଲେ ଅମ୍ବିଳ କରି ଖାଉଁ । ଆମ୍ବକୁ କାଟି ଶୁଖାଇ ଅମ୍ବୁଲ ଓ ଆମ୍ବୁର କରୁଁ । ବୈଶାଖ ଓ ଜ୍ୟେଷ୍ଠ ମାସରେ ଆମ୍ବ ପାଚେ । ପାଚିଲା ଆମ୍ବ ଭଲ ଖାଦ୍ୟ । ପାଚିଲା ଆମ୍ବର ରସରେ ଅମ୍ବସଢ଼ା ତିଆର ହୁଏ । ଆମ୍ବ ଉପରେ ଯେଉଁ ଶାଗୁଆ ଆବରଣ ଥାଏ ତାହା ଆମ୍ବର ଚୋପା । ଆମ୍ବ ପାଚିଲେ ଏହି ଚୋପା ହଳଦିଆ ବା ଲାଲ ହୋଇଯାଏ । ଆମ୍ବ ଭିତରେ ଯେଉଁ ଟାକୁଆ ଥାଏ ତାହା ଆମ୍ବର ମଞ୍ଜି ଅଟେ । ସେହି ଟାକୁଆକୁ ମାଟିରେ ପୋତିଲେ

ବର୍ଷାସମୟରେ ନଷ୍ଟ ହୁଏ । ଆମ୍ବ ଗଛର ଷାଉପଦି ମାଟି ଭିତରେ ରହିଥାଏ । ପିଲାମାନେ ଏହି ଗଛକୁ ଉପାଡ଼ିଆଣି ପିଅଁକାଳ କରନ୍ତି ।

---

## ବାୟୁ ଏବଂ ବାୟୁପ୍ରବାହ ବିଷୟରେ ଶିକ୍ଷା ।

ଉପକରଣ—ଖଣ୍ଡିଏ ପଙ୍ଖା ଏବଂ କେତେ ଗୁଡ଼ିଏ ଛିଣ୍ଡା କାଗଜ ।

ପ୍ର—( ଛିଣ୍ଡା କାଗଜଗୁଡ଼ିକ ମେଜ ଉପରେ ରଖି ପଙ୍ଖା ହଲାଇବା ଦ୍ୱାରା କାଗଜ ଉଡ଼ିଗଲା ) କାଗଜ କାହିଁକି ଉଡ଼ି ଗଲା ?

ଉ—ପବନ ଲାଗି କାଗଜ ଉଡ଼ିଗଲା ।

ପ୍ର—ପବନକୁ ଦେଖି ପାରୁ ଅଛ କି ?

ଉ—ନା, ପବନ ଦେଖା ଯାଏ ନାହିଁ ।

ପ୍ର—ବାୟୁ ଓ ପବନ ମଧ୍ୟରେ ପ୍ରଭେଦ କଣ ?

ଉ—ସ୍ଥିର ପବନକୁ ବାୟୁ କହନ୍ତି । ବାୟୁର ଗତି ହେଲେ ତାହାକୁ ପବନ କହନ୍ତି ।

ପ୍ର—ପବନ ବହିବା ବିଷୟ କିପରି ଜଣାଯାଏ ?

ଉ—ପବନ ଦେହରେ ଲାଗିଲେ ଜଣାଯାଏ ଏବଂ ପବନ ବହିଲା ବେଳେ ଗଛ ପତ୍ର ହଲେ ।

ପ୍ର—ଯେଉଁ ଘର ଭିତରେ କୌଣସି ପଦାର୍ଥ ହଲୁ ନ ଥାଏ ଏବଂ ପବନ ବହିବାର ଦେହକୁ ଜଣାଯାଉ ନ ଥାଏ ସେଠାରେ ବାୟୁ ଥାଏ କି ନାହିଁ କିପରି ଜଣାଯିବ ?

ଉ—ଯେଉଁ ଘରେ ପବନ ବହିବାର ଜଣାଯାଉ ନ ଥାଏ ସେ ଘରେ ବାୟୁ ଥାଏ । ପଙ୍ଖା ହଲାଇଲେ ତାହା ଦେହକୁ ଜଣା ଯାଏ ।

ପ୍ର—ଅଳ୍ପ ବେଗରେ ପବନ ବହିଲେ ତାହାକୁ କଣ କହନ୍ତି ?

ଉ—ଅତି ବେଗରେ ପବନ ବହିଲେ ତାହାକୁ ଝଡ଼ ବା ତୋଫାନ କହନ୍ତି ।

ପ୍ର—ତୋଫାନ ହେଲେ କଣ ହୁଏ ?

ଉ—ତୋଫାନ ହେଲେ ଗଛ ଭାଙ୍ଗି ଯାଏ ଓ ଉପୁଡ଼ି ପଡ଼େ, ଘର ଉଡ଼ିଯାଏ, ସମୁଦ୍ରରେ ଜାହାଜ ବୁଡ଼ିଯାଏ ବା ଶୁଖିଲରେ ବାଡେଇ ହୋଇଯାଏ ।

ପ୍ର—ପବନର ଗତି କାହିଁକି ହୁଏ ?

ଉ—କୌଣସି ସ୍ଥାନରେ ସୂର୍ଯ୍ୟ କିରଣ ପଡ଼ି ସେଠାରେ ବାୟୁ ଗରମ ହେଲେ ହାଲୁକା ହୋଇ ଉପରକୁ ଉଠିଯାଏ ଏବଂ ସେହି ଶୂନ୍ୟ ସ୍ଥାନ ପୂରଣ କରିବାକୁ ଅନ୍ୟ ସ୍ଥାନର ବାୟୁ ଆସିଲେ ପବନର ଗତି ହୁଏ ।

ପ୍ର—ସମୟ ସମୟରେ ଥଣ୍ଡା ପବନ ଏବଂ ସମୟ ସମୟରେ ଗରମ ଗରମ ପବନ ବହେ କାହିଁକି ?

ଉ—ପବନ ପୃଥିବୀର ଗରମ ଅଞ୍ଚଳରୁ ଆସିଲେ ଗରମ ଏବଂ ଥଣ୍ଡା ଅଞ୍ଚଳରୁ ଆସିଲେ ଥଣ୍ଡା ହୋଇ ଥାଏ ।

---

## ବାଷ୍ପୀଭବନ ବିଷୟରେ ଶିକ୍ଷା ।

ପ୍ର—ଟିକିଏ ପାଣି ଗୋଟିଏ ହାଣ୍ଡିରେ ରଖି ଜଳନ୍ତା ଚୁଲିରେ ବସାଇଲେ ପାଣି ଟିକକ କେଉଁଆଡ଼େ ଯାଏ ?

ଉ—ପାଣିତକ ବାଷ୍ପହୋଇ ବାୟୁ ସଙ୍ଗରେ ମିଶିଯାଏ ।

ପ୍ର—ଆଉ କେଉଁ କେଉଁ ଠାରୁ ବାୟୁ ଜନ୍ମୁଅଛି ?

ଉ—ସୂର୍ଯ୍ୟ କିରଣରେ ସମୁଦ୍ର, ହ୍ରଦ, ନଦୀ, ପୁଷ୍କରଣୀ ପ୍ରଭୃତିର ଜଳ ଉତ୍ତପ୍ତ ହେଉଥିବାରୁ ତହିଁରୁ ସର୍ବଦା ବାଷ୍ପ ଜନ୍ମୁଅଛି ।

ପ୍ର—ବାଷ୍ପ ଦେଖା ଯାଏ କି ନାହିଁ ?

ଉ—ବାଷ୍ପ ଦେଖା ଯାଏ ନାହିଁ ।

ପ୍ର—କି ପ୍ରକାରେ ଜଳୀୟବାଷ୍ପ ପୁଣି ଦୃଷ୍ଟିଗୋଚର ହୁଏ ?

ଉ—ବାଷ୍ପ ଥଣ୍ଡା ହୋଇ କୁହୁଡ଼ି ବା ମେଘ ଆକାର ଧାରଣ କଲେ ପୁଣି ଦୃଷ୍ଟିଗୋଚର ହୁଏ ।

---

## ମେଘ, ବୃଷ୍ଟି, ରାମଧନୁ ଓ ଶିଶିର ବିଷୟରେ ଶିକ୍ଷା ।

ପ୍ର—ମେଘ ଓ କୁହୁଡ଼ି ମଧ୍ୟରେ ପ୍ରଭେଦ କଣ ?

ଉ—ଜଳୀୟବାଷ୍ପ ପୃଥିବୀଠାରୁ ଅତ୍ୟନ୍ତ ଉଚ୍ଚରେ ଥଣ୍ଡା ବାୟୁ ସଂଯୋଗରେ ଧୂଆଁ ପରି ଦେଖାଗଲେ ତାହାକୁ ମେଘ କହନ୍ତି ଏବଂ ଜଳୀୟବାଷ୍ପ ପୃଥିବୀ ନିକଟରେ ଥଣ୍ଡାବାୟୁ ସଂଯୋଗରେ ଧୂଆଁ ପରି ଦେଖାଗଲେ ତାହାକୁ କୁହୁଡ଼ି କହନ୍ତି ।

ପ୍ର—ବର୍ଷା କିପରି ହୁଏ ?

ଉ—ମେଘ ଅଧିକ ଥଣ୍ଡା ହେଲେ ତହିଁରେ ଥିବା ଜଳକଣା [illegible] ଟୋପା ହୋଇ ଭୂଇଁରେ ପଡ଼େ। ତାହାକୁ ବର୍ଷା କହନ୍ତି ।

ପ୍ର—କେଉଁ କେଉଁ ମାସରେ ବେଶି ବର୍ଷା ହୁଏ ?

ଉ—ଆଷାଢ଼ ଓ ଶ୍ରାବଣ ମାସରେ ବେଶି ବର୍ଷା ହୁଏ ।

ପ୍ର—ବୃଷ୍ଟିଦ୍ୱାରା ଅମ୍ଭମାନଙ୍କର କି ଉପକାର ହୁଏ ?

ଉ—ବୃଷ୍ଟିଦ୍ୱାରା ଗଛମାନେ ବଢ଼ନ୍ତି, ନାନାପ୍ରକାର ଶସ୍ୟ ଜନ୍ମେ ଏବଂ ନାନାପ୍ରକାର ପରିବା ହୋଇ ଅମ୍ଭମାନଙ୍କର ବିଶେଷ ଉପକାର ହୁଏ ।

ପ୍ର—ରାମଧନୁ କାହାକୁ କହନ୍ତି ?

ଉ—ମେଘରେ ସୂର୍ଯ୍ୟ କିରଣ ପଡ଼ି ସମୟ ସମୟରେ ସାତିବର୍ଣ୍ଣ ବିଶିଷ୍ଟ ବଙ୍କା ଧନୁପରି ଯେଉଁ ଆଲୋକ ରେଖା ଦେଖାଯାଏ ତାହାକୁ ଇନ୍ଦ୍ରଧନୁ ବା ରାମଧନୁ କହନ୍ତି ।

ପ୍ର—ଇନ୍ଦ୍ରଧନୁରେ ଯେଉଁ ସାତୋଟି ବର୍ଣ୍ଣ ଦେଖାଯାଏ ସେମାନଙ୍କର ନାମ କହ ।

ଉ—ଲାଲ, ନାରଙ୍ଗୀ, ହଳଦିଆ, ସବୁଜ, ନୀଳ, ଗାଢ଼ନୀଳ ଏବଂ ବାଇଗଣୀ ।

ପ୍ର—ଶିଶିର କେଉଁଠାରେ ଦେଖାଯାଏ ?

ଉ—ଘାସ ପତ୍ରର ପ୍ରଭୃତିରେ ଶିଶିର ଦେଖାଯାଏ ।

ପ୍ର—ଶିଶିର କାହାକୁ କହନ୍ତି ?

ଉ—ସନ୍ଧ୍ୟାପରେ ଘାସ ପତ୍ରର ପ୍ରଭୃତି ଥଣ୍ଡା ହୋଇଗଲେ ବାୟୁରେ ଥିବା ଜଳୀୟ ବାଷ୍ପ ତହିଁରେ ଲାଗି ବିନ୍ଦୁ ବିନ୍ଦୁ ହୋଇ ରହିଯାଏ ତାହାକୁ ଶିଶିର କହନ୍ତି ।

ପ୍ର—କେଉଁ ସମୟରେ ଶିଶିର ପଡ଼େ ?

ଉ—ଶୀତଦିନ ରାତିରେ ଘାସ ପତ୍ରର ପ୍ରଭୃତି ଉପରେ ଶିଶିର ପଡି ସକାଳକୁ ବିନ୍ଦୁ ବିନ୍ଦୁ ହୋଇ ଦେଖାଯାଏ ।

---

## ପୃଥିବୀ ଉପରେ ଜଳର କାର୍ଯ୍ୟ ।

ପ୍ର—ବର୍ଷାପାଣି ଦାଣ୍ଡରେ ବହିଗଲା ବେଳେ କପରି ଦେଖାଯାଏ ?

ଉ—ବର୍ଷା ପାଣି ଦାଣ୍ଡରେ ବହିଗଲା ବେଳେ ଗୋଳିଆ ଦେଖାଯାଏ ।

ପ୍ର—ଏହି ଗୋଳିଆ ପାଣି ମେଘରୁ ପଡ଼ିଥିଲା କି ?

ଉ—ନା, ମେଘରୁ ନିର୍ମଳ ପାଣି ପଡ଼ିଥିଲା ।

ପ୍ର—ନିର୍ମଳ ବର୍ଷା ପାଣି କପରି ଗୋଳିଆ ହୁଏ ?

ଉ—ନିର୍ମଳ ବର୍ଷା ପାଣିରେ ପୃଥିବୀ ଉପରର ଧୂଳି ମଇଳା ପ୍ରଭୃତି ଲାଗିଯାଇ ଗୋଳିଆ ହୋଇଯାଏ ।

ପ୍ର—ବର୍ଷା ପାଣି କେଉଁଆଡ଼େ ଯାଏ ?

ଉ—ବର୍ଷା ପାଣି ଉଚ୍ଚ ଭୂମିରୁ ନିମ୍ନ ଭୂମିକୁ ବହିଯାଏ ଏବଂ ସେଠାରୁ ନାଳ ନଦୀ ପ୍ରଭୃତି ଦେଇ ସମୁଦ୍ରରେ ପଡ଼େ, ଆଉ ମଧ୍ୟ ବୃଷ୍ଟି ଜଳର କେତେକ ଅଂଶ ପୃଥିବୀ ଭିତରକୁ ପଶିଯାଏ ।

ପ୍ର—ବର୍ଷାଜଳ ବହିଗଲେ ଭୂମିର କୌଣସି ପରିବର୍ତ୍ତନ ଘଟେ କି ?

ଉ—ବର୍ଷାଜଳ ବନ୍ଧ ଗଲେ ସେଥିରେ ଉଚ୍ଚ ଭୂମିର ମାଟି ପ୍ରଭୃତି ଘୋଷାଇ ନେଇ ଖାଲକୁ ପୋତି ପକାଏ ।

## ଉଦ୍ଭିଦ ଜୀବନ ।

### ମୂଳ, କାଣ୍ଡ, ପତ୍ର ବିଷୟରେ ଶିକ୍ଷା ।

ପ୍ର—ଉଦ୍ଭିଦର ମୂଳ କାହାକୁ କହନ୍ତି ?

ଉ—ଉଦ୍ଭିଦର ଯେଉଁ ଅଂଶ ମାଟି ଭିତରେ ଥାଏ ତାହାର ନାମ ଚେର ।

ପ୍ର—କାଣ୍ଡ କାହାକୁ କହନ୍ତି ?

ଉ—ଉଦ୍ଭିଦର ଯେଉଁଠାରୁ ଶାଖା ବାହାରିଥାଏ ସେଇଠାରୁ ମୂଳ ପର୍ଯ୍ୟନ୍ତ ଅଂଶକୁ କାଣ୍ଡ କହନ୍ତି ।

ପ୍ର—ଉଦ୍ଭିଦର ଯେଉଁ ଅଂଶ ଭୂମି ଉପରେ ଥାଏ ସେମାନଙ୍କର ନାମ କହ ।

ଉ—କାଣ୍ଡ, ଶାଖା, ପ୍ରଶାଖା ପତ୍ର, ପୁଷ୍ପ ଓ ଫଳ ।

ପ୍ର—ସମସ୍ତ ପ୍ରକାର ଉଦ୍ଭିଦର କାଣ୍ଡ ଭୂମି ଉପରେ ଥାଏ କି ?

ଉ—ନା, ସମସ୍ତ ପ୍ରକାର ଉଦ୍ଭିଦର କାଣ୍ଡ ଭୂମି ଉପରେ ନ ଥାଇ କୌଣସି ଉଦ୍ଭିଦର କାଣ୍ଡ ମାଟି ଭିତରେ ଥାଏ ।

ପ୍ର—ଯେଉଁ ଉଦ୍ଭିଦମାନଙ୍କର କାଣ୍ଡ ମାଟି ଭିତରେ ଥାଏ ସେମାନଙ୍କ ମଧ୍ୟରୁ କେତେକ ଗୋଟିର ନାମ କହ ।

ଉ—ମୂଳା, ପିଆଜ, ରସୁଣ, ପ୍ରଭୃତିର କାଣ୍ଡ ମାଟି ଭିତରେ ଥାଏ ।

ପ୍ର—କେତେ ଗୁଡ଼ିଏ ସରଳ ପତ୍ରର ନାମ କହ ?

ଉ—ଆମ୍ବପତ୍ର, ବରପତ୍ର, ଅଶ୍ୱତ୍ଥପତ୍ର ପ୍ରଭୃତି ସରଳ ପତ୍ର ଅଟନ୍ତି ।

ପ୍ର—କେତେଗୁଡ଼ିଏ ଜଟିଳ ପତ୍ରର ନାମ କହ ?

ଉ—ବେଲପତ୍ର, ଶିମ୍ବପତ୍ର, ଲିମ୍ବପତ୍ର, ଅଗସ୍ତି ପତ୍ର ପ୍ରଭୃତି ଜଟିଳପତ୍ର ଅଟନ୍ତି ।

ପ୍ର—କେଉଁ କେଉଁ ଗଛର ପତ୍ର ପିତା ଲାଗେ ?

ଉ—ଲିମ୍ବ, ପାଳଧୁଆ ପ୍ରଭୃତି ଗଛର ପତ୍ର ପିତା ଲାଗେ ।

ପ୍ର—କେଉଁ କେଉଁ ଗଛର ପତ୍ର ଅମିଳା ଲାଗେ ?

ଉ—ତେନ୍ତୁଳି ପତ୍ର, ଅମ୍ବିଳଙ୍ଗ ପତ୍ର ଅମ୍ବିଳା ଲାଗେ ।

ପ୍ର—କେଉଁ ଗଛର ପତ୍ର ରାଗ ଲାଗେ ?

ଉ—ଭୃଙ୍ଗଯୋଡ଼ା ଗଛର ପତ୍ର ରାଗ ଲାଗେ ।

ପ୍ର—କେଉଁ ଗଛର ମୂଳ ରାଗ ଲାଗେ ?

ଉ—ଅଦା ରାଗ ଲାଗେ ।

ପ୍ର—କେଉଁ ଗଛକୁ ଛୁଇଁଲେ ବୁଜି ହୋଇ ଯାଏ ?

ଉ—ଲାଜକୁଳୀ ଗଛକୁ ଛୁଇଁଲେ ତାହାର ପତ୍ର ବୁଜି ହୋଇଯାଏ ।

ପ୍ର—କେତେ ଗୁଡ଼ାଏ ସ୍ୱାଦୁଫଳର ନାମ କହ ।

ଉ—ଆମ୍ବ, ପଣସ, କଦଳୀ, ପିଜୁଳି, ଆତ, ନଡ଼ିଆ ପ୍ରଭୃତି ।

ପ୍ର—କେଉଁ କେଉଁ ଫଳ ରାଗ ଲାଗେ ?

ଉ—ଲଙ୍କାମରିଚ, ଗୋଲମରିଚ ପ୍ରଭୃତି ଫଳ ରାଗ ଲାଗେ ।

ପ୍ର—କେଉଁ କେଉଁ ଫଳ ଅମ୍ବିଳା ଲାଗେ ?

ଉ—କାଗଜିଲେମ୍ବୁ, ତେନ୍ତୁଳି, ଆମ୍ବ, ଅମ୍ବଡ଼ା ପ୍ରଭୃତି ଫଳ ଅମ୍ବିଳା ଲାଗେ ।

ପ୍ର—କେଉଁ ଫଳ ପିତା ଲାଗେ ?

ଉ—କୋଚିଲା ଫଳ ପିତା ଲାଗେ ।

ପ୍ର—କେତେ ଗୁଡ଼ାଏ ଲାଲ୍ ଫୁଲର ନାମ କହ ।

ଉ—मନ୍ଦାର, ଶିମିଳି, ପଳାଶ, କୃଷ୍ଣଚୂଡ଼ା, ହରଗଉରୀ, ଗୋଲାପ, କୁନ୍ଦଲତା ଓ ରଙ୍ଗଣୀ ଫୁଲ ।

ପ୍ର—କେତେ ଗୁଡ଼ାଏ ହଳଦିଆ ଫୁଲର ନାମ କହ ।

ଉ—କନିଅର ଫୁଲ, ସେବତୀଫୁଲ, ସୁନାରୀଫୁଲ, ସୂର୍ଯ୍ୟମୁଖୀ ଫୁଲ, ଚମ୍ପାଫୁଲ, ଶୋରିଷ ଫୁଲ, ଛଣପଟ ଫୁଲ, ଗେଣ୍ଡୁ ଫୁଲ (କୁସୁମଫୁଲ) ପ୍ରଭୃତି ।

ପ୍ର—କେତେ ଗୁଡ଼ିଏ ଧଳାଫୁଲର ନାମ କହ ।

ଉ—ମଲ୍ଲୀ, ମାଳତୀ, ଯାଇଁଜ, ଶେଫାଳୀ, ଟଗର, ଜୁଈ, ଯାଈ, କୁନ୍ଦ, ପୁନ୍ନାଗ, କଇଁ, ଧୂତୁରା, ମୂଳାଫୁଲ ପ୍ରଭୃତି ।

ପ୍ର—କେତେ ଗୁଡ଼ିଏ ନୀଳ ଫୁଲର ନାମ କହ ।

ଉ—ନୀଳକଇଁ, ଅପରାଜିତା ଫୁଲ ।

ପ୍ର—ଫୁଲର ଭିନ୍ନ ଭିନ୍ନ ଅଂଶର ନାମ କହ ।

ଉ—ବୃନ୍ତ, ପାଖୁଡ଼ା, କେଶର, ବୀଜକୋଷ ।

---

## ପ୍ରାଣୀବିଭାଗ ବିଷୟରେ ଶିକ୍ଷା ।

ପ୍ର—ପ୍ରାଣୀମାନେ କେତେ ପ୍ରଧାନ ଭାଗରେ ବିଭକ୍ତ ହୁଅନ୍ତି ?

ଉ—ପ୍ରାଣୀମାନେ ଦୁଇ ପ୍ରଧାନ ଭାଗରେ ବିଭକ୍ତ ଯଥା,—ମେରୁଦଣ୍ଡୀ ପ୍ରାଣୀ ଏବଂ ମେରୁଦଣ୍ଡହୀନ ପ୍ରାଣୀ ।

ପ୍ର—ମେରୁଦଣ୍ଡୀ ପ୍ରାଣୀ କାହାକୁ କହନ୍ତି ?

ଉ—ଯେଉଁ ପ୍ରାଣୀମାନଙ୍କ ଦେହରେ ହାଡ଼ ଅଛି ସେମାନଙ୍କୁ ମେରୁଦଣ୍ଡୀ ପ୍ରାଣୀ କହନ୍ତି ।

ପ୍ର—କେତେ ଗୁଡ଼ିଏ ମେରୁଦଣ୍ଡୀ ପ୍ରାଣୀର ନାମ କହ ।

ଉ—ମନୁଷ୍ୟ, ଗୋରୁ, ଘୋଡ଼ା, ଛେଳି, ମେଣ୍ଢା, ହଂସ, କାଉ, ସାପ, ବେଙ୍ଗ, ମାଛ ପ୍ରଭୃତି ।

ପ୍ର—ମେରୁଦଣ୍ଡହୀନ ପ୍ରାଣୀ କାହାକୁ କହନ୍ତି ?

ଉ—ଯେଉଁ ପ୍ରାଣୀମାନଙ୍କ ଦେହରେ ହାଡ଼ ନାହିଁ ସେହିମାନଙ୍କୁ ମେରୁଦଣ୍ଡହୀନ ପ୍ରାଣୀ କହନ୍ତି ।

ପ୍ର—କେତେଗୁଡ଼ିଏ ମେରୁଦଣ୍ଡହୀନ ପ୍ରାଣୀର ନାମ କହ ।

ଉ—ପ୍ରଜାପତି, ମାଛି, ଜୋକ, ଗେଣ୍ଡା, ମାକଡ଼ସା, ଉଈ ପ୍ରଭୃତି

ପ୍ର—ମେରୁଦଣ୍ଡୀ ପ୍ରାଣୀ କେତୋଟି ଶ୍ରେଣୀରେ ବିଭକ୍ତ ହୁଅନ୍ତି ?

ଉ—ମେରୁଦଣ୍ଡୀ ପ୍ରାଣୀ ପାଞ୍ଚଶ୍ରେଣୀରେ ବିଭକ୍ତ । ଯଥା —ସ୍ତନ୍ୟପାୟୀ, ପକ୍ଷୀ, ସରୀସୃପ, ଉଭୟଚର ଓ ମାଛ ।

ପ୍ର—ସ୍ତନ୍ୟପାୟୀ ପ୍ରାଣୀ କାହାକୁ କହନ୍ତି ?

ଉ—ଯେଉଁମାନେ ଛୁଆ ସମୟରେ ମା ଠାରୁ ଦୁଧ ଖାଇ ବଞ୍ଚନ୍ତି ସେମାନଙ୍କୁ ସ୍ତନ୍ୟପାୟୀ ପ୍ରାଣୀ କହନ୍ତି ।

ପ୍ର—କେତେଗୁଡ଼ିଏ ସ୍ତନ୍ୟପାୟୀ ପ୍ରାଣୀର ନାମ କହ ।

ଉ—ମନୁଷ୍ୟ, ଗୋରୁ, ଘୋଡ଼ା, ଛେଳି, ମେଣ୍ଢା, କୁକୁର, ବିରାଡ଼ି, ବାଘ, ସିଂହ, ବିଲୁଅ, ଭାଲୁ, ହରିଣ ପ୍ରଭୃତି ।

ପ୍ର—କେତେଗୁଡ଼ିଏ ପକ୍ଷୀର ନାମ କହ ଏବଂ ସେମାନଙ୍କର ଉତ୍ପତ୍ତି ବିଷୟରେ ଯାହା ଜାଣ ବର୍ଣ୍ଣନ କର ।

ଉ—କାଉ, ଚଢ଼େଇ, ବଣି, ମୟୂର, ହଂସ, କୁକୁଡ଼ା ପ୍ରଭୃତି ପକ୍ଷୀ ଅଟନ୍ତି । ଏମାନଙ୍କ ଶରୀର ସୁନ୍ଦର ପକ୍ଷରେ ଆବୃତ ଥିବାରୁ ଏମାନଙ୍କୁ ପକ୍ଷୀ କହନ୍ତି । ଏମାନେ ଅଣ୍ଡାରୁ ଜନ୍ମନ୍ତି । ଜନ୍ମହେଲେ ମତ୍ରକେ କୀଟ ପତଙ୍ଗ ଖାଇ ପ୍ରାଣଧାରଣ କରନ୍ତି । ଏମାନଙ୍କର ଦୁଇଗୋଟି ଗୋଡ଼ ଓ ଦୁଇଗୋଟି ଡେଣା ଅଛି । ଅଧିକାଂଶ ପକ୍ଷୀ ଡେଣା ସାହାଯ୍ୟରେ ଉଡ଼ି ପାରନ୍ତି ।

ପ୍ର—କେତେଗୁଡ଼ିଏ ସରୀସୃପର ନାମ କହ ଏବଂ ସେମାନଙ୍କ ସମ୍ବନ୍ଧରେ ଯାହା ଜାଣ ବର୍ଣ୍ଣନ କର ।

ଉ—ସାପ, ଗୋଧି, ଏଣ୍ଡୁଅ, ଝିଟିପିଟି, ଚମ୍ପେଇନେଉଳ, କୁମ୍ଭୀର ପ୍ରଭୃତିଙ୍କୁ ସରୀସୃପ କହନ୍ତି । ଏମାନେ ଅଣ୍ଡାରୁ ଜନ୍ମନ୍ତି । ଏମାନେ ଭୂମିରେ ଗାତକରି ତହିଁରେ ଅଣ୍ଡା ଦିଅନ୍ତି ଏମାନେ ଜନ୍ମପରେ କୀଟ ପତଙ୍ଗ ପ୍ରଭୃତି ଖାଇପ୍ରାଣ ଧାରଣ କରନ୍ତି ।

ପ୍ର—ଉଭଚର ପ୍ରାଣୀ କିଏ ? ସେମାନଙ୍କ ସମ୍ବନ୍ଧରେ ଯାହା ଜାଣ କହ ।

ଉ—ବେଙ୍ଗ ଉଭଚର ପ୍ରାଣୀ । ଏମାନେ ଅଣ୍ଡାରୁ ଜନ୍ମନ୍ତି । ଏମାନେ ପାଣିରେ ଅଣ୍ଡା ଦିଅନ୍ତି । ଅଣ୍ଡାରୁ ଯେଉଁ ଛୁଆ ବାହାରେ ତାହାକୁ ବେଙ୍ଗଫୁଲ କହନ୍ତି । ବେଙ୍ଗଫୁଲର ଗୋଡ଼

ନ ଥାଏ, ଗୋଟିଏ ଲାଞ୍ଜ ଥାଏ । ବଡ଼ ହେବା ସଙ୍ଗେ ସଙ୍ଗେ ଲାଞ୍ଜଟି ସାନ ହୋଇ ଯାଉଥାଏ । ପରେ ଚାରି ଗୋଡ଼ ବାହାରିଲେ ପାଣିରୁ ଉଠି ମାଟିରେ ବେଙ୍ଗ ବୁଲନ୍ତି ।

ପ୍ର—କେତେକ ପ୍ରକାର ମାଛର ନାମ କହ ଏବଂ ସେମାନଙ୍କ ସମ୍ବନ୍ଧରେ ଯାହା ଜାଣ କହ ।

ଉ—ରୋହି, ଭାକୁର, ବାଲିଆ, ଶେଉଳ, କଉ, ମାଗୁର ପ୍ରଭୃତିକୁ ମାଛ କହନ୍ତି । ଏମାନେ ଅଣ୍ଡାରୁ ଜନ୍ମନ୍ତି ଏବଂ ଜଳରେ ଥାନ୍ତି । ଏମାନଙ୍କର ଛାତିରେ ଦୁଇଗୋଟି, ପେଟରେ ଦୁଇଗୋଟି, ପିଠିରେ ଗୋଟିଏ ଏବଂ ଦେହ ଶେଷରେ ଗୋଟିଏ, ଏହିପରି ଛଅ ଗୋଟି ଡେଣା ଅଛି । ଏହା ଦ୍ୱାରା ମାଛମାନେ ଜଳରେ ସନ୍ତରଣ କରନ୍ତି । ପଛ ଡେଣାଟିକୁ ଲାଞ୍ଜ କହନ୍ତି । ମାଛର ନାକ ନାହିଁ, ଫୁଲ ଅଛି । ସେହି ଫୁଲ ଦ୍ୱାରା ଜଳରୁ ପବନ ନିଅନ୍ତି । ଅଧିକାଂଶ ମାଛର ଦେହ କାତିରେ ଆବୃତ ।

ପ୍ର—ଚିଙ୍ଗୁଡ଼ି ମାଛ କି ନା ?

ଉ—ଚିଙ୍ଗୁଡ଼ି ମାଛ ନୁହେ, ଏହା ଜଳଜ କୀଟ ।

ପ୍ର—ମାଛ ଏବଂ ଚିଙ୍ଗୁଡ଼ିର ପ୍ରଭେଦ ବୁଝାଇ ଦିଅ ।

ଉ—ମାଛମାନଙ୍କର ଡେଣା ଅଛି, ଚିଙ୍ଗୁଡ଼ିର ତାହା ବଦଳରେ ଗୋଡ଼ ଅଛି, ଚିଙ୍ଗୁଡ଼ି ଦେହରେ କାତି ନ ଥାଏ ଖୋଳ ଅଛି । ମାଛମାନଙ୍କର ମେରୁଦଣ୍ଡ ବା କଣ୍ଟା ଅଛି, ମାତ୍ର ଚିଙ୍ଗୁଡ଼ିର ତାହା ନାହିଁ । ଏହିସବୁ କାରଣରୁ ଚିଙ୍ଗୁଡ଼ିକୁ ମାଛ ନ କହି କୀଟ କହନ୍ତି ।

ପ୍ର—ପ୍ରଜାପତି ପ୍ରଭୃତି ପତଙ୍ଗମାନଙ୍କର କେତୋଟି ଅବସ୍ଥା ଅଛି ?

ଉ—ପ୍ରଜାପତି ପ୍ରଭୃତି ପତଙ୍ଗମାନଙ୍କର ତିନିଗୋଟି ଅବସ୍ଥା ଅଛି ।

ପ୍ର—ପ୍ରଜାପତି ପ୍ରଭୃତି ପତଙ୍ଗମାନଙ୍କର ତିନି ଅବସ୍ଥାର ବର୍ଣ୍ଣନା କର ।

ଉ—ପ୍ରଜାପତି ପ୍ରଭୃତି ପତଙ୍ଗମାନେ ଅଣ୍ଡାଦିଅନ୍ତି । କିଛିଦିନ ପରେ ସେହି ଅଣ୍ଡାରୁ ଗୋଟିଏ କୀଟ ବହିର୍ଗତ ହୋଇ ଗଛପତ୍ର ଖାଇ ବୁଲେ । ଏହା ପ୍ରଜାପତି ପ୍ରଭୃତିଙ୍କର ପ୍ରଥମ ଅବସ୍ଥା । ସେହି କୀଟ କିଛିଦିନ ପରେ ଗୋଟିଏ ପୋକ ଆକାର ଧାରଣ କରି ଗଛପତ୍ର ପ୍ରଭୃତିରେ ଲାଖି ରହେ । ଏହା ସେମାନଙ୍କର ଦ୍ୱିତୀୟ ଅବସ୍ଥା । ଏହି ଅବସ୍ଥାରେ ସେମାନେ କିଛି ନ ଖାଇ ନ ପିଇ କେତେକ ଦିନ ରହନ୍ତି । ପରେ ତହିଁ ମଧ୍ୟରୁ ପକ୍ଷଯୁକ୍ତ ପ୍ରଜାପତି ବହିର୍ଗତ ହୋଇ ଫୁଲରୁ ମଧୁ ଖାଇ ପ୍ରାଣଧାରଣ କରେ । ଏହା ସେମାନଙ୍କର ତୃତୀୟ ବା ଶେଷ ଅବସ୍ଥା ।

ପ୍ର—ମଶା କିପରି ଜନ୍ମନ୍ତି ?

ଉ—ପଚା ପାଣିରେ ଜନ୍ମିଥିବା ଲମ୍ବା ଲମ୍ବା କୀଟଗୁଡ଼ିକ ବଢ଼ିଗଲେ ତହିଁରୁ ମଶା ବାହାର ହୁଅନ୍ତି ।

ପ୍ର—ବାଦୁଡ଼ିକୁ ପକ୍ଷୀ କୁହାଯିବ କି ନା କାରଣ ସହ କହ ?

ଉ—ବାଦୁଡ଼ି ପକ୍ଷୀ ନୁହେ । କାରଣ ଅନ୍ୟାନ୍ୟ ପକ୍ଷୀ ପରି ବାଦୁଡ଼ି ଅଣ୍ଡା ଜନ୍ମ ନ କରି ଛୁଆ ଜନ୍ମ କରେ ଏବଂ ସେହି ଛୁଆ ମା ଠାରୁ ଦୁଧ ଖାଇ ବଢ଼େ । ଏଣୁ ଏମାନଙ୍କୁ ସ୍ତନ୍ୟପାୟୀ ମକଳ ଶ୍ରେଣୀସ୍ଥ ଜୀବ ବୋଲି କୁହାଯାଇ ପାରେ ।

## ପରିଶିଷ୍ଟ ।

### ୧ ।—ଆଦର୍ଶ ଗଠନ ।

ମୃତ୍ତିକା ଦ୍ୱାରା, ଅମ୍ବ, ଅମ୍ବଟାକୁଆ, କେଲ, କଦଳୀ, ନଡ଼ିଆ, ବାଇଗଣ ପ୍ରଭୃତିର ଆଦର୍ଶ ଗଠନ କରିବାକୁ ହେବ ।

### ୨ ।—ଅଙ୍କନ ।

ଖଡ଼ିଦ୍ୱାରା ବୋର୍ଡରେ ବା ସ୍ଲେଟରେ ଅମ୍ବ, ଅମ୍ବଟାକୁଆ, ଧାନ ଅମ୍ବଗଛ, ବେଲ, କଦଳୀ, ବାଇଗଣ, ବୋଇତାଳୁ, ଜହ୍ନି, ବରପତ୍ର, ଅଶ୍ୱତ୍ଥପତ୍ର ପ୍ରଭୃତିର ପ୍ରତିକୃତି ଅଙ୍କନ କରିବାକୁ ହେବ ।

U. P. Works, Cuttack.

# ବିଜ୍ଞାପନ ।

## ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ବ୍ୟବହାରୋପଯୋଗୀ
## ପାଠ୍ୟ ପୁସ୍ତକାବଳୀ ।

| | | |
|---|---|---|
| ବର୍ଣ୍ଣବୋଧ (ମଧୁସୂଦନ ରାଓ) | | ଟ ୦ / ୨ |
| ବର୍ଣ୍ଣବୋଧ ଅର୍ଥ | | ଟ ୦ / |
| ବର୍ଣ୍ଣବୋଧ (ରାମଚନ୍ଦ୍ର ରାଓ) | | ଟ ୦ ୵ |
| ପଣକିଆ ମାଳିକା | | ଟ ୦ / |
| ଚଟାଶାଳିପାଠ | | ଟ ୦ / ୨ |
| ଶିଶୁବୋଧ | | ଟ ୦ / ୨ |
| ଶିଶୁବୋଧ ଟୀକା | | ଟ ୦ ୵ |
| ଶିଶୁପଦାର୍ଥପାଠ | | ଟ ୦ / |
| ନିମ୍ନପ୍ରାଥମିକସ୍ୱାସ୍ଥ୍ୟରକ୍ଷା ( ଜଗନ୍ନାଥ ଗାନ୍ଧିବନ୍ଧୁ ) | | ଟ ୦ / |
| " ଭୂଗୋଳ | (ଏଜ୍ଞ) | ଟ ୦ / |
| " ଇତିହାସ | (ଏଜ୍ଞ) | ଟ ୦ ୵ |
| " ପଦାର୍ଥପାଠ | (ଏଜ୍ଞ) | ଟ ୦ / ୨ |
| " ପ୍ରକୃତିପର୍ଯ୍ୟବେକ୍ଷଣପାଠ | (ଏଜ୍ଞ) | ଟ ୦ / ୨ |
| " ମାନସାଙ୍କ | (ଏଜ୍ଞ) | ଟ ୦ / |
| " ରଚନାଶିକ୍ଷା | (ଏଜ୍ଞ) | ଟ ୦ / |
| ପ୍ରଥମ ଓ ଦ୍ୱିତୀୟ ମାନ କଥାବଳୀ | | ଟ ୦ ।/ |
| ପ୍ରଥମ ଦ୍ୱିତୀୟମାନ କଥାବଳୀ ବ୍ୟାଖ୍ୟା | | ଟ ୦ । |
| ପ୍ରଥମଭାଗ କଥାବଳୀ | | ଟ ୦ ୵ |
| ପ୍ରଥମଭାଗ କଥାବଳୀ ବ୍ୟାଖ୍ୟା | | ଟ ୦ / |
| ଗାଣିତିକ କୌତୁକ ପ୍ରଶ୍ନ | | ଟ ୦ ୵ |
| ପ୍ରତିଶବ୍ଦବୋଧିନୀ | | ଟ ୦ / |

ଶ୍ରୀ ରାଧାକୃଷ୍ଣ ବସୁ ଏମ୍, ଏ,

ଓଡ଼ିଆବଜାର, ପୋ: ଅ: ଚାନ୍ଦନୀଚୌକ, କଟକ, ।